ବେଳେ ପରିଦର୍ଶନ କଲେ, ତାହାର କପରି ଦୁର୍ଦ୍ଦଶା ଘଟେ, ଏ ସମ୍ବନ୍ଧରେ ମୋର ଗୋଟିଏ ନିଜ ଅଭିଜ୍ଞତା ବର୍ଣ୍ଣନା କରୁଛି ।

ଆମ ଗାଁ ପାଖର ଗୋଟିଏ ନିମ୍ନପ୍ରାଇମେରି ସ୍କୁଲରେ ସେହି ଗ୍ରାମର ଜଣେ ବ୍ୟକ୍ତି ଶିକ୍ଷକ ଥିଲେ । ସେ ଘରକାମ ଓ ବିଲକାମରେ ବ୍ୟସ୍ତ ରହୁଥିଲେ । ଯେତେବେଳେ ଟିକିଏ ଅବସର ପାଉଥିଲେ, ସେତେବେଳେ ସେ ବେତଖଣ୍ଡି ଏ ଧରି ସ୍କୁଲ୍ ଭିତରକୁ ପଶିଯାଉଥିଲେ ଏବଂ ପିଲାମାନଙ୍କୁ କିଛି ନ ପଚାରି ସମସ୍ତଙ୍କୁ ପାହାରେ ଲେଖାଏଁ ଚଢ଼ାଇ ଦେଉଥିଲେ । ଫଳରେ ପିଲାମାନେ ଠିକ୍ ହେଉ ବା ଭୁଲ ହେଉ ବଡ଼ ପାଟି କରି ଫଳା-ପଣିକିଆ ଡାକୁ-ଥିଲେ ଏବଂ ବଡ଼ପାଟିରେ ବହି ପଢ଼ୁଥିଲେ । ଶିକ୍ଷକ ଦଣ୍ଡେ ରହି ସ୍କୁଲରୁ ବାହାରିଯିବା ଆଗରୁ ପିଲାମାନଙ୍କୁ କହୁଥିଲେ—"ତୁମେମାନେ ପାଠ ପଢ଼ୁଛ କି ନା ମୁଁ ଏହି ପାଖରେ ରହି ଶୁଣୁଛି ସେ ! ପାଟି ବନ୍ଦ କଲେ ପୁଣି ବେତ ଧରି ପହଞ୍ଚିଯିବି ।" ଏହାପରେ ପିଲାମାନେ ପାଠ ପଢ଼ୁ ନ ଥିଲେ କିମ୍ବା ପାଟି ବନ୍ଦ କରୁ ନ ଥିଲେ । ଶିକ୍ଷକ ଚାଲିଗଲା ପରେ ମାର୍ ପିଟ୍ କୋଳାହଳ ଭିତରେ ସ୍କୁଲଟିକୁ ଚହଲା କରି ରଖୁଥିଲେ । ଗ୍ରାମବାସୀମାନେ ଭାବୁଥିଲେ ସେ ପିଲାମାନେ ଖୁବ୍ ପାଠ ପଢ଼ୁଛନ୍ତି ।

ସାଂସ୍କୃତିକ ବ୍ୟାପାର ବିଭାଗଟିକୁ ଏହି ସ୍କୁଲ ପରି ଚଲାଇଲେ ସେଥିରୁ ବେଶି ସୁଫଳ ମିଳିବ ନାହିଁ । ଏ ବିଭାଗର କର୍ମଚାରୀମାନଙ୍କ ଦରମା ଓ ପଦୋନ୍ନତି ବିଷୟ ମଧ୍ୟ ବିଚାର କରିବା ବାଞ୍ଛନୀୟ । ସବୁ ବିଭାଗର କ ଚାରୀମାନଙ୍କ ମଧ୍ୟରୁ ଶତକଡ଼ା ୨୫ରୁ ୨୦ ଜଣ ଉପରି ପାହ୍ୟାକୁ ଯାଉଛନ୍ତି; କିନ୍ତୁ ସାଂସ୍କୃତିକ ବ୍ୟାପାର ବିଭାଗରେ ଏ ବ୍ୟବସ୍ଥା ନାହିଁ । ବ୍ୟକ୍ତିଗତ ଅଭିଜ୍ଞତାରୁ ମୁଁ ଜାଣେ ଯେ ମିଉଜିୟମ କାମ କଲେଜକାମଠାରୁ କଠିନ । ମୁଁ ଯେତେବେଳେ ମିଉଜିଅମ କାମ ଛାଡ଼ି ପୁଣି କଲେଜ କାମରେ ଯୋଗଦେଲି, ସେତେବେଳେ ପ୍ରଫେସର ବିଧୁଭୂଷଣ ଦାସ (ବର୍ତ୍ତମାନ ଡି. ପି. ଆଇ.) ମୋତେ ପଚାରିଲେ—"ଉଭୟ କାମ ମଧ୍ୟରେ କି ତଫାତ୍ ଦେଖିଲେ ?" ମୁଁ କହିଲି—"ମିଉଜିୟମ୍ କାମଟା ହେଉଛି ପାଲା, ଆଉ କଲେଜ କାମଟା ହେଉଛି ଭାଗବତ । ପାଲାରେ କଣେ ଭଲ ଗାଇ ନ ପାରିଲେ ଧରାପଡ଼ିଯାଏ, କିନ୍ତୁ ଭାଗବତରେ ଧରାପଡ଼େ ନାହିଁ ।"

କୌଣସି କୌଣସି ବନ୍ଧୁ ମୋତେ କହନ୍ତି ଯେ ଅନ୍ୟ ରାଜ୍ୟମାନଙ୍କରେ ମଧ୍ୟ ଅପକର୍ମ ଅଛି; କିନ୍ତୁ ମୁଁ କାହିଁକି କେବଳ ଆମ ରାଜ୍ୟର ଅପକର୍ମର ତୀବ୍ର ସମାଲୋଚନା କରୁଛି । ସେମାନେ ଲକ୍ଷ୍ୟ କରୁନାହାନ୍ତି ଯେ ଓଡ଼ିଶାର ଜନସଂଖ୍ୟା ଭାରତର ଜନସଂଖ୍ୟାର ପଚିଶ ଭାଗରୁ ଭାଗେ ହେଲେ ମଧ୍ୟ ଓଡ଼ିଶା ସମସ୍ତ ଅପକର୍ମରେ ପ୍ରଥମ ଶ୍ରେଣୀରେ ପ୍ରଥମ ହେଉଛି, କିନ୍ତୁ ସତ୍କର୍ମରେ ପାଶ୍ ନମ୍ବର ସୁଦ୍ଧା ରଖିପାରୁ ନାହିଁ । ଏହା ହିଁ ମୋର ତୀବ୍ର ସମା-ଲୋଚନାର କାରଣ । ଅଶ୍ଳୀଳତା ସମସ୍ତ ରାଜ୍ୟରେ ଅଛି, କିନ୍ତୁ କେହି ଏହାକୁ ଗଣପ୍ରଚାର ମାଧ୍ୟମରେ ଜାତୀୟ ସଂସ୍କୃତି ରୂପେ ପ୍ରଚାର କରୁନାହିଁ । ମୁଁ ଶୁଣିଛି ଯେ ପେରିସ୍ ନଗରୀରେ

ନଗ୍ନଚିତ୍ରର ସିନେମା ରହିଛି, କିନ୍ତୁ ଏହା "କେତେକ ବ୍ୟକ୍ତିଙ୍କ" ପାଇଁ ଉଦ୍ଦିଷ୍ଟ । ଗଣପ୍ରଚାରର ମାଧ୍ୟମରେ ଯାହା ପ୍ରଚାର କରାଯାଏ, ତାହା "ସମସ୍ତ ବ୍ୟକ୍ତିଙ୍କ" ପାଇଁ ଉଦ୍ଦିଷ୍ଟ । ଯବନିକାର ଅନ୍ତରାଳରେ ବହୁ ଅଶ୍ଳୀଳତା ଘଟିଯାଉଛି, କିନ୍ତୁ କୌଣସି ଜାତି ଜାତୀୟ ସ୍ତରରେ ଏହାକୁ ଜାତୀୟ ସଂସ୍କୃତି ବୋଲି ପ୍ରଚାର କରୁନାହିଁ । ଓଡ଼ିଶାରେ ଜାତୀୟସ୍ତରରେ ନାରୀକୁ ଅଶ୍ଳୀଳତା ମଧ୍ୟକୁ ଟାଣି ଅଣାଯାଉଛି । କିନ୍ତୁ କେତେକାଂଶରେ ପ୍ରତିବେଶୀବିଦ୍ୱେଷ ପରବଶରେ ଓ କେତେକାଂଶରେ କବିମାନଙ୍କ ପ୍ରତି ଅନ୍ଧଭକ୍ତିରେ ବା ଭ୍ରାନ୍ତ ଧର୍ମଧାରଣାରେ କେତେକ ସଂସ୍କୃତି ବ୍ୟବସାୟୀ ଓଡ଼ିଆ ଏହାକୁ ଜାତୀୟ ସଂସ୍କୃତି ବୋଲି ପ୍ରଚାର କରିଛନ୍ତି ଓ କରୁଛନ୍ତି । ଏହି ପ୍ରଚାରକୁ ରାଜଶକ୍ତି ସାହାଯ୍ୟ କରିଛି । ନାରୀ ଯବନିକାର ଅନ୍ତରାଳରେ ଥିଲେ ମଧ୍ୟ ଯୁଗେ ଯୁଗେ ସୃଷ୍ଟି ଓ ସଂହାରିଣୀ ଶକ୍ତିରୂପେ କାର୍ଯ୍ୟ କରିଛି । ଓଡ଼ିଶାର ବ୍ୟାସ ଆଦିକବି ସାରଳା ଦାସ ଏହା ବୁଝିଥିଲେ । ତାଙ୍କର ଚିନୋଟି କାବ୍ୟରେ ସୀତା, ଦୁର୍ଗା ଓ ଦ୍ରୌପଦୀଙ୍କୁ ସୃଷ୍ଟି ଓ ସଂହାରିଣୀ ଶକ୍ତିରୂପେ ଚିତ୍ରିତ କରି ଯାଇଛନ୍ତି । ଓଡ଼ିଶାର ପରବର୍ତ୍ତୀ ଯୁଗରେ ନାରୀକୁ ଯବନିକାର ଅନ୍ତରାଳରୁ ଟାଣି ଆଣି ତାହାର ଗହନମନର ଗୋପନୀୟ ରତିକ୍ରିୟାକୁ କୁତ୍ସିତ ଭାବରେ ଚିତ୍ରିତ କରାଯାଉଛି । ଐତିହାସିକ ଦୃଷ୍ଟିରୁ ଦେଖିଲେ ଜଣାଯାଏ ଯେ ନାରୀ ହିଁ ଓଡ଼ିଆମାନଙ୍କ ଅଧଃପତନର କାରଣ ହୋଇଛି । ନାରୀ ଗୋଟିଏ ଜାତିକୁ ଉପରକୁ ଉଠାଇଦିଏ କିମ୍ବା ତଳକୁ ଖସାଇଦିଏ ।

ମୋର ଏହି ଲେଖାର ଯେଉଁ ପ୍ରତିକ୍ରିୟା ହେବ, ତାହା କଅଣ ମୁଁ ଜକେ ଅନୁମାନ କରିପାରୁନାହିଁ ? ୨୫ । ୧୦ । ୫୨ ତାରିଖର 'ସମାଜ'ରେ ପ୍ରକାଶିତ ମୋର "ଓଡ଼ିଶାର ଇତିହାସ ଓ ଐତିହାସିକ ଉପାଦାନ" ଶୀର୍ଷକ ପ୍ରବନ୍ଧ ଯେଉଁ ପ୍ରତିକ୍ରିୟା ସୃଷ୍ଟି କରିଥିଲା, ତାହା କଅଣ ମୁଁ ଭୁଲିଯାଇଛି ? ସମସ୍ତ ଜାଣି ମୁଁ ଏ ଗ୍ରନ୍ଥ ଲେଖିଛି । କଲିକତା କରି ଦେଖିଛି ଯେ ପଚିଶ ବର୍ଷ ପରେ ବର୍ତ୍ତମାନ ଓଡ଼ିଶାର ବହୁ ବୁଦ୍ଧିଜୀବୀ ଓ ବହୁ ତରୁଣ-ତରୁଣୀ ମୋ ଲେଖାର ସତ୍ୟତା ଉପଲବ୍ଧି କରୁଛନ୍ତି । ଏହା ହିଁ ମୋ ଲେଖାର ଯଥାଲାଭ । ତାହା ନ ହେଲେ ମୁ ୧୯୪୪ରୁ ଓଡ଼ିଶାକୁ ଭଲଭାବରେ ଚହ୍ନିଛି । ଏହିବର୍ଷ Political Status of the Feudatory States of Orissa and Chhatisgarh ନାମକ ପୁସ୍ତକ ଲେଖିବା ପରଠାରୁ ମୁଁ ଯେଉଁ ଦୟନୀୟ ଅବସ୍ଥାରେ ଏ ପର୍ଯ୍ୟନ୍ତ ଗୁଲିଆସିଛି, ତାହାର କରୁଣ କାହାଣୀ ଏ ପୁସ୍ତକରେ ଲେଖିଛି । ୧୯୪୭ରୁ ଭାରତରେ ସ୍ୱାଧୀନତା ଆସି-ଥିଲେ ହେଁ ସାଧାରଣ ନରନାରୀର ଉପଭୋଗ୍ୟ ବିଚାରସମତା ଓ ଦଣ୍ଡସମତା ମୋ ପ୍ରତି ପ୍ରଯୁଜ୍ୟ ହୋଇ ନାହିଁ । ମୋତେ ହାତରେ ନ ମାରି ଭାତରେ ମରାହୋଇଛି । ମୋ ବିରୁଦ୍ଧରେ ନାନା ମିଥ୍ୟାପବାଦ ପ୍ରଚାର କରାହୋଇ ମୋ ମୁହଁକୁ ପୋଡ଼ି ଦିଆଯାଇଛି । ଲେଖକ ହିସାବରେ ମୋର ସୃଜନୀଶକ୍ତିକୁ ବିକଶିତ ହେବାକୁ ଦିଆଯାଇ ନାହିଁ । ମୋର ଦୋଷଟା ଯେ କଅଣ, ମୋତେ ନିର୍ଦ୍ଦିଷ୍ଟଭାବରେ କେହି କହୁନାହାନ୍ତି । ଘୋର ନୈରାଶ୍ୟ, ଦୁଃଖ ଓ ଅପମାନ ମଧ୍ୟରେ ମୁଁ ଖାଲି କାନ୍ଦି କାନ୍ଦି ଗାଇଛି—

ସବୁ ବେଦନାର ନିନାଦ ସଙ୍ଗତେ ତବ ଆରାଧନା କରୁଛୁ ହେ,
ଫୁଲ କରି ଯେତେ ନୟନଲୋତକ ତବ ପଦତଳେ ଦଳୁଛୁ ହେ,
ମାନ ଅଭିମାନ କରିଦେଲି ଚୂନା,
ଚିନା ଖୋଜି ଯାଇ ପାଇଲି ମୁଁ ସୁନା !

କିନ୍ତୁ ମୁଁ ମୋର ଆତ୍ମସମ୍ମାନ ଛାଡ଼ି ନାହିଁ । ସୁଧୀପାଠକମାନେ ମୋ ଜୀବନର ଆଖ୍ୟାୟିକା ପଢ଼ି ଜାଣିବେ ଯେ ବାଲ୍ୟକାଳର ଦୁର୍ଦ୍ଦିନରେ ମଧ୍ୟ ମୁଁ ଆତ୍ମସମ୍ମାନ ପ୍ରତି ସଚେତନ ଥିଲି । ମୁଁ ବିଶ୍ୱାସ କରେ ଯେ ଏହି ହେତୁ ଅଦୃଶ୍ୟ କର୍ଣ୍ଣଧାର ମୋତେ ଅନ୍ଧକାରରୁ ଆଲୋକକୁ ଟାଣି ଆଣିଥିଲେ । ଗୁଣ୍ଟୁର ଜିଲ୍ଲାର କୋଣ୍ଡବିଡ଼ୁ ଦୁର୍ଗରେ ଅବରୁଦ୍ଧ ଓଡ଼ିଆ ସୈନ୍ୟମାନେ ଜଳାଭାବରେ ଓ ଖାଦ୍ୟାଭାବରେ ପ୍ରାଣତ୍ୟାଗ କରିଥିଲେ, ମାତ୍ର ଆତ୍ମସମର୍ପଣ କରି ନ ଥିଲେ । କୃଷ୍ଣଦେବ ରାୟଙ୍କ ସେନାପତି ସାଳୁବ ତିମ୍ମ ଓ ତାଙ୍କ ସୈନ୍ୟମାନେ ଦୁର୍ଗ-ଦ୍ୱାର ଭାଙ୍ଗି ଓଡ଼ିଆ ସୈନ୍ୟମାନଙ୍କ ଶବ ଓ କେତେକ ଜୀବିତ ସାମନ୍ତଙ୍କୁ ହିଁ ପାଇଥିଲେ । ମୁଁ ଏହି ମହାନ୍ ଐତିହ୍ୟର ଜଣେ ଦାୟାଦ ।

ମୁଁ ସାଂସ୍କୃତିକ କ୍ଷେତ୍ରରେ ନିଷ୍ଠାସହକାରେ ଚାଳିଶ ବର୍ଷ କାର୍ଯ୍ୟକରି ବର୍ତ୍ତମାନ ଜୀବନର ଏପରି ଏକ ଅବସ୍ଥାରେ ଆସି ପହଞ୍ଚିଛି, ଯେତେବେଳେ କି ମୋର କର୍ମଶକ୍ତି ନିତାନ୍ତ ସଙ୍କୁଚିତ ହୋଇପଡ଼ିଛି । ପରଲୋକଗତ ମୋର ସମସ୍ତ ଭାଇଭଉଣୀ ମଧ୍ୟରୁ କେହି ୭୦ ବର୍ଷରୁ ଅଧିକ ବଞ୍ଚି ନ ଥିଲେ । ଏଣୁ ମୁଁ ଦୀର୍ଘଯୋଜନା କରି ଅର୍ଥ ଓ ସମ୍ମାନ ପାଇଁ ଆଶାୟୀ ହେଉ ନାହିଁ । ମୋତେ ଯଥେଷ୍ଟ ମିଥ୍ୟାପବାଦ ଓ ଅପମାନ ଦିଆହୋଇଛି; ଆଉ ଅଧିକ ଦିଆ ନ ହେଉ । ମୁଁ ଜଣେ ନିତାନ୍ତ ନିର୍ବୋଧ ଓ ଏକଜିଦିଆ ଲୋକ । ଜୀବନରେ ଅନ୍ତତଃ ଦଶଥର ମୋର ପକେଟମାର ହୋଇଛି, ଦୁଇଟି ଘଣ୍ଟା ଓ ବହୁ ଫାଉଣ୍ଟେନ୍ ପେନ୍ ମୋ ଦେହରୁ ହରଣଚାଲ ହୋଇଯାଇଛି । ମୁଁ କଅଣ ଏଡ଼େ ଚାଲାକ୍ ଯେ ସମସ୍ତଙ୍କୁ ଠକି ଦେଇ ପାରିଛି ? ମୁଁ ମୋର ଆଦର୍ଶରୁ ବିଚ୍ୟୁତ ହୁଏ ନାହିଁ, ଏଣୁ ଦୁଃଖ ପାଏଁ । ମୁଁ କେବଳ ମୋର ସମସ୍ତ ବିପର୍ଯ୍ୟୟ ପାଇଁ ଦାୟୀ । ମୁଁ ମୋର ବିପର୍ଯ୍ୟୟ ପାଇଁ କାହାରିକୁ ଦୋଷୀ କରୁ ନାହିଁ । ମୋର ପ୍ରାପ୍ୟ ମଜୁରିରୁ ଯାହା ଚାଲିଗଲା, ସେଥିପାଇଁ ମଧ୍ୟ ମୋର ଶୋଚନା ନାହିଁ । ଯେତେବେଳେ ଯେଉଁଆଡ଼ୁ ପବନ ବହିଲା, ସେହିଆଡ଼େ ଯଦି ଛତା ଧରିଥାନ୍ତି, ତେବେ ମୋର କୌଣସି ବିପର୍ଯ୍ୟୟ ଘଟି ନ ଥାନ୍ତା । କିନ୍ତୁ ମୁଁ ତାହା କରି ନାହିଁ କିମ୍ବା କରିପାରିବି ନାହିଁ । ମୋତେ ପଶାଖେଳର କାଠି ବା ଗୁଣ୍ଟି ରୂପେ ଆଉ କେହି ବ୍ୟବହାର ନ କରନ୍ତୁ, ଏହା ହିଁ ମୋର ସମସ୍ତଙ୍କ ପାଖରେ ଯୋଡ଼କରରେ ପ୍ରାର୍ଥନା । ସମସ୍ତ ବିପର୍ଯ୍ୟୟ ପରେ ଯାହା ପାଇଛି, ସେତିକରେ ମୁଁ ସନ୍ତୁଷ୍ଟ । ବାଲ୍ୟକାଳରେ ମାସିକ ଦୁଇଟଙ୍କା ଦରମାର ଚାକିରି ପାଇ ନ ପାରି ମୁଁ ନିରାଶରେ ଫେରିଥିଲି । ପ୍ରାଥମିକ ସ୍କୁଲର ଜଣେ ଶିକ୍ଷକ ହେବା ମୋର ଜୀବନର ଉଚ୍ଚତମ ଲକ୍ଷ୍ୟ ଥିଲା । ବର୍ତ୍ତମାନ ମୋର ଆର୍ଥିକ ଓ ମାନସିକ ଅବସ୍ଥାରେ ବିପୁଳ ପରିବର୍ତ୍ତନ

ଘଟିଛି । ମୋର ପୁଅ ଅଛନ୍ତି, ପେନ୍‌ସନ ଅଛି ଓ ଖଣ୍ଡିଏ ଘର ଅଛି । ଏଣୁ ମୁଁ ବଞ୍ଚିଥିବା ପର୍ଯ୍ୟନ୍ତ ଗାଇବି—

ଜୀବନପାତ୍ର ମୋ ଭରିଛ କେତେମତେ
ନ ଦେଲ କିଛି ବୋଲି କହିବି କି ହେ ଆଉ ?
ଜୀବନ ପ୍ରିୟତମ ହରିଛ ମୋ ଭରମ
ତରଣୀ ମୋର ଭବ ସାଗରେ ବହିଯାଉ ।
କୂଳର ଜନପ୍ରାଣୀ କେତେ ମିଳାଅ ଆଣି
ନୟନ ପଲକରେ ଲୁଚୁଅ ଜାଣି ଜାଣି,
ବୃଥା ମୁଁ ଅଭିମାନୀ ହୃଦେ ଧରଇ ଟାଣି
ମରତ ପ୍ରବାସୀ ମୁଁ ନ ଜାଣି ଆଣେ ଦାଉ ।୧।

ମାନସହଂସ ମୁଁ ମାନସେ ଯିବ ଉଡ଼ି
ମୋ ଦୋଷେ ପଥ ହୁଡ଼ି ଭରମେ ଅବିରତ,
ଅଳପ ତୃଷା କ୍ଷୁଧା ଲଭି ତୁମର ସୁଧା
ତୃପତ ହେଲି, ତେବେ ଲୋଡ଼ଇ ଏ ମରତ !
ନିଜ ବାସନା-ଜାଲେ ବିକଳ ବନ୍ଧୁତ
ଧମିର ଅଙ୍କନେ ମିଳେ କି ଅମୃତ ?
ଛାଡ଼ିବ ଦୂରେ ଯିବ ସାଗରପାରେ ବସିବ
ଲଙ୍ଘି ହିମଗିରି ଯିବ ଗୋ ବେଳଥାଉଁ ।୨।

———

# ଶୁଦ୍ଧିପତ୍ର

| ପୃଷ୍ଠାଙ୍କ | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୫ | ୧୮ | ଅଙ୍ଗରେ ଆଣିଥିଲେ | ସଙ୍ଗରେ ଆଣିଥିଲେ |
| ୫ | ୧୮ | କମ୍ପରେ | କମ୍ପରେ |
| ୭ | ୧୨ | ବାଥଡ଼ି | ବାଥୁଡ଼ି |
| ୧୦ | ୧୭ | ଜଣେ ଭୂମିପିଲ୍ଲ | ଜଣେ ଭୂମିଜପିଲ୍ଲ |
| ୧୧ | ୧୭ | କୁମ୍ଭାର୍ଢାରେ | କୁମ୍ଭୀଢାରେ |
| ୧୩ | ୧୭ | ଆସୁସିଲେ | ଆସୁଥିଲେ |
| ୪୨ | ୮ | ଝିଲ୍ଡ଼ପଣା | ଝିଲପଣା |
| ୪୮ | ୨୪ | ଭୌମଙ୍କର ସ୍ୱଜତ୍ୱ | ଭୌମକର ସ୍ୱଜତ୍ୱ |
| ୪୯ | ୧୯ | ଖିଚଙ୍ଗର ମୌଳିକ ନାମ ଥିଲ୍ସ; | ଖିଚଙ୍ଗର ମୌଳିକ ନାମ ଥିଲ୍ସ ଖିଜଙ୍ଗ; |
| ୫୪ | ୯ | ତାଙ୍କ୍ର କାରରେ | ତାଙ୍କ କାରରେ |
| ୫୭ | ୨୩ | ଏସିଆନ୍ ଦଳରେ | ଏଶିଆନ୍ ଦଳରେ |
| ୭୫ | ୪ | for man important | form an important |
| ୭୭ | ୩ | କାହାରକୁ ଧରାଧରି କରିବା | କାହାରକୁ ଧରାଧରି କରି ନ ଥିଲ; ଧରାଧରି କରିବା |
| ୯୦ | ୧୯ | ତାଙ୍କ ବନ୍ଧୁକମାନଙ୍କ ଅତ୍ୟାଚାରରେହିଁ | ତାଙ୍କ ବନ୍ଧୁକମାନଙ୍କ ଅତ୍ୟାଚାରରେ ନୁହେଁ, ତାଙ୍କ ସ୍ତାବକମାନଙ୍କ ଅତ୍ୟାଚାରରେ ହିଁ |
| ୯୭ | ୨୨ | ବାଦ୍ୟଖଣ୍ଟାମୁଖରିତ | ବାଦ୍ୟଘଣ୍ଟାମୁଖରିତ |
| ୧୦୩ | ୧୦ | ସୀତା ବଟି | ସୀତାବଂଟି |
| ୧୦୩ | ୨୪ | ସୀତାବଟି | ସୀତାବଂଟି |
| ୧୨୪ | ୧୩ | ପ୍ରେମରସାପୁତ ଓ ଭକ୍ତିରସାପୁତ | ପ୍ରେମରସାପ୍ଳୁତ ଓ ଭକ୍ତିରସାପ୍ଳୁତ |
| ୧୫୪ | ୯ | ସାରଳା ମହାଭାରତ ଏଗ୍ରନ୍ଥ | ସାରଳା ମହାଭାରତ ଏଗ୍ରନ୍ଥର |
| ୧୬୯ | ୧୦ | ଯନ୍ତ୍ର ନିର୍ମାଣ କରେ ! | ଯନ୍ତ୍ର ନିର୍ମାଣ କରେ । |
| ୧୭୫ | ୨୨ | ଲଙ୍ଗମେନ୍‌ସ୍ ପାଖକୁ ପଠାଗଲା । | ଲଙ୍ଗମେନ୍‌ସ୍ ପାଖକୁ ପଠାଗଲା |

| ପୃଷ୍ଠାଙ୍କ | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୧୭୯ | ୨୯ | ମୁଁ ସେମାନଙ୍କ ମାଡ଼ ଢ଼ି ଷଟେଲେ— | ମୁଁ ସେମାନଙ୍କ ମାଡ଼ ଢ଼ି ଧଣଲ— |
| ୨୦୧ | ୭ | ଏଇଟା କ'ଣ । | ଏଇଟା ଢ'ଣ |
| ୨୦୯ | ୯ | ସ୍ଥଳକ | ସ୍ଥଳକ ଓ |
| ୨୦୯ | ୧୦ | ଅବାନ୍ତ | ଅବାନ୍ତର |
| ୨୧୦ | ୨ | ପୂର୍ବପୁରୁଷଗୁଡ଼ଙ୍କ | ପୂର୍ବପୁରୁଷମାନଙ୍କ |
| ୨୧୧ | ୧୮ | ଛେଡ଼ାଦେଲେ | ଛେଡ଼ା ହେଲେ |
| ୨୧୨ | ୯ | ବାଳୀ (ବାଲ) | ବଳୀ (ବାଳ) |
| ୨୧୨ | ୧୫ | ଚକଧର | ଚକଧର କହିଲେ |